# କାହିଁକି ତୁମେ

ବିଦ୍ୟୁତ୍‌ପ୍ରଭା ଦେବୀ



# କାହିଁକି ତୁମେ

ଲେଖିକା :

ବିଦ୍ୟୁତ୍‌ପ୍ରଭା ଦେବୀ

ନିରୁପମା ପ୍ରକାଶନୀ

ମହାନଦୀ ବିହାର

କଟକ-୭୫୩୦୦୪

# କାହିଁକି ତୁମେ

ଲେଖିକା :
**ବିଦ୍ୟୁତ୍‌ପ୍ରଭା ଦେବୀ**

ପ୍ରଥମ ପ୍ରକାଶ—୧୯୮୯

ପ୍ରକାଶକ :
**ନିରୁପମା ପ୍ରକାଶନୀ**
ମହାନଦୀ ବିହାର, କଟକ-୭୫୩୦୦୪

ମୁଦ୍ରଣ :
**ନବରଙ୍ଗ**
ଷ୍ଟୋନ୍‌ରୋଡ଼,
ଡଗରପଡ଼ା, କଟକ-୨

ମୂଲ୍ୟ—ଟ ୭-୫୦

# ସୂଚୀପତ୍ର

ସବୁରି ପାଖରୁ
ପାଇବ ଆଦର
ହେ ଠିକ ଜ୍ଞାନ

ଠିକ ପ୍ରଶ୍ନର
ଠିକଏ ଉତ୍ତରେ
ପାଇଲେ ମାନ ।



# କାହିଁକି ତୁମେ ହସ



କାଖେ ଦେଲେ କେହି କୁତୁକୁତୁ କାଳଥା
ହସ ତୁମେ କର କର
ହାବୁକା ମାରେ ସେ ହସର ତୋଫାନ
ଓଠର କବାଟ ଟର ।

ମଳୟ ପବନେ ଗୋଲାପ ପାଖୁଡ଼ା
ଡେଣା ପଡ଼ୁଥାଏ ଖସି
ଦେଖି ମାମୁ ଘର ମିଠେଇ ହାଣ୍ଡି ଟି
ନାଚ ଦେଖାଇଦେଲେ ହସି ।

ପାଇଲେ ପାଟରୁ ଜେଜେଙ୍କ ହାତରୁ
ବେଲୁନ୍ ବା ପେଏଁ କାଳି
କେତେ ସରାଗରେ ଫୁଙ୍କୁଥାଅ ତାକୁ
ହସି ହସି ମାତି ତାଳି ।

ଚୂଆଁ ଚୂଲିଁ ଗପ ମେଲ ଦେଉଁ ଦେଉଁ
ଜହ୍ନରେ ବୁଢ଼ୀ ଆଈ
ହସ ଖୁସି ଟାକ ରହୁଥାଅ କଥା
ମଞ୍ଜ ଟି ଶୁଣିବା ପାଇଁ ।

ହସ ପୁଣି ତୁମେ ଜନମ ଦିନରେ
ଦେଖି ନୂଆ ଜାମାପଟା
ଲୁଚେଇ ଲୁଚେଇ ଖାଉଥିଲେ କେବେ
ଲାଡ଼ୁଭଳେ କୋଳ କଷ୍ଟା ।

ଖେଳସାଥୀଟିଏ ପଡ଼ିଲେ ହାବୁଡ଼େ
ଦରୋଟି ପିଜୁଳ ଧରି
ଆଖି ମିଟୁକାକେ ଚଲିମାରିଦିଅ
କିଛି ଟଳେ ହସ ହରି ।

କେବେ ଠୋଓ ଠୋହ କେବେ କଟା କଟା
ମୁରୁକ ମୁରୁକ ହସ
ସେଇଁ ହସ ଲାଗି ସାରା ଦୁନିଆଟା
ତୁମରି ପାଖରେ ବଶ !

ତୁମେ କାହୁଁ ପିଲେ ଚଞ୍ଚଳ ପାରଦ
ତୁମରହସର ମୂଳ
ଯେ ହସ ଟିକରେ ଝରି ପଡୁଥାଏ
ମାଟିରେ ସରଗ ଫୁଲ ।

ତୁମ ହସ ମୂଳ ସେଦିନ ଖୁଣ୍ଟିବ
ତୁମେ ହେଲେ ବାପ ମାଆ
ଗୁଲୁଗୁଲୁ କଥା କୁଲୁକୁଲୁ ହସ
କେଡ଼େ ଖୁସିଲାଗେ ଆହା !

କାର୍ତ୍ତିକ ହସୁଛ ପଦ୍ମରଲେ ପୁଣି
ଦୁଇଗୁଣ ତୁମେ ହସ
ଭଣି ଭଣି ମୁହଁ ଦେଖିଲେ ବା କାହିଁ
ନିଜ ବାଟେ ନିଜେ ଖସ ।

ଆପେ ତ କେବଳ ହସ ନାହିଁ ତୁମେ
ସାରା ଜଗତକୁ ହସା
ଯେତେ ଦେଖୁଥିଲେ ସେତେ ହସଟିକ
ନ ଲାଗଇ ଆଖି ପସା ।

□ □ □

# କାହିଁକି ତୁମେ କାନ୍ଦ



ସକେଇ ସକେଇ କାନ୍ଦୁଛୁ କାହିଁକି
ବାପା ଦେଲେ କରେ ଗାଳି
ବନ୍ଧୁର ମଲାଠ ଚଉ ଦେଖନ୍ତି କି
ଜାମାରେ ଲାଗିଛି କାଳି ।
ଅବଧାନ ବେତ ବାଜଲେ ପିଠିରେ
[illegible]

କେଁ କେଁ କେବେ ଲଟେଇଥା ସଦା
ରୋଗଶେଯେ ଘରେ ପଡ଼ ।

କଇଁ କଇଁ ପୁଣି କାନ୍ଦୁଥାଅ କେବେ
ମାଡ଼ ଦେଇଥିଲେ ମାଆ
ନ ମିଳିଲା ଚକ ଅଣ୍ଡ ବସି ଖାଲି
ଭେଁ ଭେଁ ହେଉଥାଅ ।

ନ ବୁଝି କେଉଁଠି ଆପଣାର ଦୋଷ
କାହିଁକି ମୂଳଅ ମାଡ଼
କେତେ ବଡ଼ ପାଟି ମେଲା କରି ଦେଇ
ଆଖିଟିଂକୁ ଖାଲି ଝାଡ଼ ।

ହାତରୁ ମିଠେଇ ଝାମ୍ପି ନେଲେ କେହି
ମେଲାଦିଅ ତୁମେ ଆଁ
ବୋଉ ଯାଉଥିଲେ ମାମୁଁ ଘରେ ତୁମ
ଫାଟିପଡ଼େ ସାରା ଗାଁ ।

ଟିକେ ଅପମାନ ହେଲେ ଜଳଭରା
ହୁଅ ତୁମେ ସକ ସକ
କଳା କଥା ପଦେ କହି ଦେଲେ କେହି
ମନେ ତା' ସାଇତି ରଖ ।

ଚନ୍ଦର ମୁହଁକ ବାଦର ଢଶଇ
ଥନ ଥନ ହେଲେ ଆଖି
ଟିଇକ କଥାରେ କାନ୍ଦବାକୁ ଖାଲି
ଉହ୍ୱଥା ଯେମିତି ଟାକ ।

ରାଗ ହେଲେ ଭର ଆଖି ଲୁହ ସାର
ଓଠରେ ଫୁଟାଅ ହସ
ସବୁ ଶେକତକ ଠୁଳ କର ତୁମେ
କାନ୍ଦ ସାଙ୍ଗେ ବଳ କଷ ।

କାହିଁକି ବା କାନ୍ଦ ଆପଣା କାନ୍ଦଣା
ଆପେ ନାହିଁ ବୁଝିପାର
ବକଲେ ମିନାଟି ଆଖି ମଳ ମଳ
ଲୁହଚକ ଖାଲି ସାର ।

କଅଁଳ ଗୁଣ୍ଡରେ ଟିକଏ ଆଘାତେ
ଆଖିରୁ ଝରିଲେ ଜଳ
ମନକୁ ତୁମର ବୋଧ ଦେବା ପାଇଁ
କାନ୍ଦଣାକି ବଡ଼ ବଳ ।

# କାହିଁକି ତୁମେ ରୁଷ



କାହିଁକି ତୁମେ ରୁଷ     କହିଲ ଆରେ ପିଲେ
ଛୁଲ ଛୁ ଶୁଣ ଖାଲି     ସୁଗୁଣ ସେତେ ଥିଲେ ।

ଆଜେଇ ଢଳା ଭାତ     ଫୋପାଡ଼ ଦଅ ପିଠା
ମୁହଁକୁ କର ମିଠା     ନାଚିଲେ ସେତେ ମିଠା ।

ସ୍କୁଟଶାଳୀରେ ନଜେ
ହଜେଇ ବଅ ଖଡ଼
ନ ହେଲ ବୋଲ ନୂଆ
ଭୁଛାରେ କାନ୍ଦ ଗଡ଼ ।

ଝିପିଝିପିଆ ମେଘ
ଝିମ୍ବଲ ଗୋଟି ପଣ
କହ୍ମଲେ କେନ୍ଧ ପଦେ
ରୁଷୁଛ ତୁମେ କ'ଣ ?

ଉଦୁଉଦିଆ ଖରା
ନଶୂନ ନଥୁଟିଆ
ପାଚଲା କଇଁଆରେ
ଗୁଲଇ ବେୋକଖିଆ ।

ଶୋଇଲେ ଜରେ ତୁମେ
ହୋଇବେ ମାଆ ଧନ
ଆପଣା ଭଲ କଥା
ନ ବୁଝ ଆପେ ମନ ।

କୁଣିଆଁ ଦାଣ୍ଡ ଘରେ
କରୁଛ ଏତେ ପାଟି
ଧୋବଲା ଜାମାପଟା
ହେଉଛି ଧୂଳ ମାଟି ।

ଝରକା କବାଟରେ
ଗାରେଇ ଅଛ ଖଡ଼
ଭଉଣୀ ସାଙ୍ଗେ କଳ
କରୁଛ ଘଡ଼ ଘଡ଼ ।

ନୁହଁ ତ କୋଳଛୁଆ
କଥାଟି ଭଲ ମାନ
ଏତକ ବୁଝିବାକୁ
ହୋଇ ନା ଏତେ ସାନ ।

କାର୍ତ୍ତିକ ତୁମେ ରୁଷ
କାର୍ତ୍ତିକ ତୁମେ ରାଗ
ଅପା କ ଖାଏ ମାଛ
ତୁମେ କ ଖାଅ ଶାଗ ?

ରୁଷିବା ଠାରୁ ବଳି  ନାହିଁ ତ କଷ୍ଟ ପାଇ
ମଣିଷ ଜୀବନେ ନାହିଁ  ରାଗନ୍ତ ବାଧ ଯାଏ ।

ରାଗିବ ଯେବେ ତୁମେ  ରଗାଇ ପୁଣି ଆନେ
କିଏ ନସ ଦେବ ଝିମି  କୃଦ୍ଧ ତ ମାଆ ଜାଣେ ।

କାହିଁକି ତୁମେ ରୁଷ  କହିଲ ଆରେ ପିଲେ
ଛୁଇଁ ଘ୍ର ଶୁଣ ଖାଲି  ହଜାରେ ଗୁଣ ଥିଲେ ।

ରୁଷିବ ଯଦି ତୁମେ  ପାଇବ ଅପମାନ
ତୁମଠୁଁ ଯିଏ ଶ୍ରେଷ୍ଠ  ମୋଡ଼ିବେ ତୁମ କାନ ।

ମୁହଁରେ ଟିକେ ଦୁଃଖ  ଦେଖିଲେ ବାପା ମାଆ
କୋଳକୁ ଆଉଜେଇ  କହିବେ ଆହା ଆହା ।

ରାଗିବା ଠାରୁ ବଳି  ନାହିଁ ତ ବଡ଼ ଦୋଷ
ଜଳିଲେ ବୃଥା ରାଗେ  କାହାର ଯିବ କସ ?

ଆପଣା ରାଗେ ନିଜେ  ଆପେ ହିଁ ଯିବ ଜଳି
ବୃଥାରେ ରାଗି ରୁଷି  ନ କର ବୃଥା କଳି ।



# କାହିଁକି ଧର ଜିଦି



କୁହତ ପିଲାଏ    ଜିଦ ଧର କାହିଁ ପାଇଁ
ଜିଦଖୋର ବୋଲି    ଡାକନ୍ତି ଭଉଣୀ ଭାଇ ।

ଶୁଣିନା କୁହନ୍ତି    ଅଜିଦନ କଥାରୁଚାଏ
ଚୁପ୍ ସଇତାନ    ନ ଥିବେ ଏସନ ଗାଏଁ ।

ବାପା କହୁଥାନ୍ତି    କପାଳେ ନ ଥିଲେ ହଲ
ଇମିତିକା ଭାଲୁ    କରିଥାନ୍ତି କଲବଲ ।

ଦୁନିଆ ଭୁଣ୍ଡରୁ    ରାଇଜସାକର ଗାଳି
ତୁମରି ମୁଣ୍ଡରେ    ଦେଉଥାନ୍ତି ସବୁ ଢାଳି !

ଅମୁକ ଦରବ ଆଣିଦିଅ ଏବେଇଲଗେ
ପିନ୍ଧା ଖାଇବା ଧନ ଅଭାବ ମାଆ ସଙ୍ଗେ ।

କାନ୍ଦିକି ପିଲାଏ ଅଙ୍କ ହେଉଛ ବୁଦ୍ଧ
କାନ୍ଦିଲେ ବୁଢ଼ୀମା ପୋଛୁଛ ଦେଉଛ ତ ଲଡ୍ଡୁ ।

ବାପା ଦେଉଛନ୍ତି ଭଲ ଜାମା ଭଲ ବସ୍ତ୍ର
ବୋଉ ଖୋଉଛନ୍ତି ଖଜା, ପିଠା, ଦୁଧ, ଦହି ।

ଗୋପକୁ ତ ଦାଦା କିଣି ଦେଉଛନ୍ତି ଜୋତା
ମାମୁ ଦେଉଛନ୍ତି କଲିକତି ଫୁଲ ଛତା ।

ଆଈ ଦେଉଛନ୍ତି ନାଲିଆ ବଇଁଲଟିଏ
କାନ୍ଦିରେ ତୁମକୁ ବୁଝାଇବ ଆଉ କିଏ ?

ତୁମର ପର ତ ଅଛନ୍ତି ଆଦର କେତେ
ତୁମ ପର ସେ କ ଶାସନ ଦୁଃଖନ୍ତି କେତେ ?

ସାଙ୍ଗିକା କଥାରେ ନଗୋଡ଼ ଛେଳକି ପଡ଼
ଭୋଗିଥାନ୍ତି ସଦା କେତେ ସାଙ୍ଗସାଥୀ ଧର ।

ଅଳପ କଥାରେ ନ ଯାଅ ପିଲାଏ ରୁଷି
ବୋଲଟି ମାନଲେ ବାପା ବୋଉ ହେବେ ଖୁସି ।

କଡ଼ଟିକୁ ଗୁଡ଼ କଲେ ହସ ହସ ମୁହଁ
ସାରା କୁଟୁମ୍ବର ହେବ ତୁମେ ଗେହ୍ଲା ପୁଅ ।

ତୁମେ ହେଲେ ଭଲ ତୁମ ଗୁଣ ଦେଖି ସର୍ବେ
ତୁମ ଭଲ ହେବେ ତୁମର ଭଜଣୀ ଗର୍ବ ।

ସୁନାମୁଣ୍ଡାଟିଏ ତୁମେ ଯେବେ ହୋଇ ଯାଅ
ମାଷ୍ଟ୍ରେ କହିବେ ଆରେ ବାଃ—ଆରେ ବାଃ ।



# କାହିଁକି ତୁମେ ମାଠ



ତୁମେ ରେ ଯେତେ ବାତୁଳ ଛୁଆ,
ଘଡ଼ିକ ପାଇଁ ନ ପାର ବସି

ତୁମକୁ ଯେତେ ଆକଟ କଲେ
ପବନ ପରି ପଳାଅ ଖସି ।

ବରଷା ନାଚେ—ପବନ ନାଚେ
ଝରଣା ନାଚେ, ନାଚଇ ନଈ

ଖୁସିରେ ତୁମେ ନାଚଲେ ସବୁ
ଧୂଳରେ ଆସେ ସରଗ ବହି ।

ପକ୍ଷୀଟି ପରି ହାଲୁକା ମନେ
ଏକଟି ନାଚ, ଏକାଟି ଡିଅଁ

ଜୀବନ ତୁମ ଖେଳରେ ଗଢ଼ା
ଖେଳଟି ତୁମ ଜୀବନ ପ୍ରିୟ ।

ତୁମେ ରେ ଯେତେ ବାଜୁତ ତୁଆ
ଥିରଟି ହୋଇ ନ ପାର ବସି

ଅଜାଣତରେ ଫୋଖତ ହୁଏ
ମନକୁ ମନ ଦେହର କଷି ।

ସେ କସରତେ ନ ବୁଝେ ଝାଳ
ସେ ନାଚକୁ ଦେ ନ ଲାଗେ ଅକା

ସେଥି ନାଚରେ ମନର-ନଅଁ
ହୁଏ ରେ ଟାଣ, ହୁଏ ରେ ପକ୍କା ।

ନାଚବ ବୋଲି ତୁମେ ରେ ପିଲେ
ନ ମାନ ଝଡ଼ ପବନ ପାଣି

ତନ୍ଦ୍ରିରେ ଦେହ ଟକ୍‌କା କରେ
ବିଧାତା ତୁମ ହୃଦୟ ଜାଣି ।

ଭ୍ରମର ବନେ ତୁମେ କି ନାଚ
ନକ୍ଷତ୍ର ଆଜ ତୁମକୁ ଜଣେ

ଇଚ୍ଛାରେ ଯା'ଙ୍କ ଡଣିଆ ନାଚେ
ନାଚଇ ଫୁଲ କଗିଚ୍ଚ ବଣେ ।

ନ ବୁଝି ତୁମେ ଭ୍ରମର ନାଚ
ନ ବୁଝି ତୁମେ ଖୁସିର ମୂଳ

ଧୂଳି ମାଟିର ଏ ଖେଳ-ଘରେ
ତୁମେ ରେ ପ୍ରାଣ-ଖେଳନା ଭୁଲ ।

ଖୁସିରେ ସବୁ ନାଚରେ ନାଚ
ଶୁଖାଅ ନାହିଁ ହସିଲା ମୁହିଁ

ତୁମେ ହିଁ ଘର ପରଜାପତି
ମନକୁ ସଦା ମଧୁରେ ଧୁଅ ।

ଭେଳକି ପରି ନାଚରେ ନାଚ
ହରଣ ପରି ଡିଅଁରେ ଡିଅଁ

ଭ୍ରମର ଖଟି ଅମୃତ-କୁଣ୍ଡୁଁ
ପିଅନ୍ତୁ ଆନେ—ତୁମେ ବି ପିଅ ।



# କାହିଁକି କର ଚୋରି



ଚୋରି କରିବାକୁ ନାହିଁ କହୁ ବଡ଼ ପାପ
ଶିଖାଇଲେ ଗୁରୁ ଶିଖାଇଲେ ମାଆ ବାପ ।
ବୁଝାଇଲେ ଅଜା ସଞ୍ଜୁଆ ଭଜନ ଗାଇ
ଚୋରଠାରୁ ବଳି ମହାପାପୀ ଆଉ
ଏ ତିନି ଭୁବନେ ନାହିଁ ।

ଯତନ ସାଇତା ତୁମରି ଖେଳନାଟିଏ
କେହି ଆସି ଯେବେ ତୁମ ଅଜାଣତେ ନଏ ।
ଭାବିଲ, ତୁମର ମନକୁ କିପରି କାଟେ
ଭଲ କି ଲାଗଇ ସେଦିନଟି ତୁମ
ଖେଳ ବୁଲ ପାଠଶାଠେ ?

ଯେ ଦରବ ପାଇଁ ଲୋଭେଉଛୁ ତୁମ ଆଖି
ବେଳ କାଳ ଦେଖି କୁହ ତା ବୋଉକୁ ଡାକ ।
ଦେବାକୁ ଯଦି ତା ଅରାଜି ହୁଅନ୍ତି ନନା
ହେବ ନାହିଁ ବୋଲି ଆପଣାକୁ ଆପେ
କରିଦିଅ ସଫା ମନା ।

ବାପା ଯା' କହନ୍ତି ସେ ତୁମ ମଙ୍ଗଳ ପାଇଁ
ଏ କଥାଟି ମନୁ କେବେ ଭୁଲିଯିବ ନାହିଁ ।
ଆଜି ଯା' ନ ଦେଲେ କାଲି ତା' ଦେବେ ସେ ଆଣି
ତେଣୁ ଜେଦଠାରୁ ନେହ ପିଲାଏ ତୁମେ
ଦୂରେ ରୁହ ଜାଣି ଜାଣି ।

ଲୁଚି ଓ ଲୁଚେଇ ତୁମେ ଜେଦକର ଯିନା
ସେ ଜେଦ ଧରନ୍ତି ଆଉ ଜଣେ ତୁମ ବିନା ।
ସଂସାରେ ଯାହାଙ୍କୁ କେହି ଦେଖିପାରେ ନାହିଁ
ତୁମେ ଯାହା କର ସେହି ଭଗବାନ
ଦେଖନ୍ତି ସବୁଠି ଥାଇ ।

ଜାଣିଶୁଣି ଯେବେ ନ ଛାଡ଼ିବ ଜେଦ ଜମା
କ୍ଷମାମୟ ପ୍ରଭୁ ନ ଦେବେ ତୁମକୁ କ୍ଷମା ।
କୁଳେ କାଳି ବୋଳା ଅରଜିବ ଅପଯଶ
ନ କହିବେ କେହି ଘରକୁ ଆସ, ବା
ପାଖେ ଟିକେ ବାବୁ ବସ ।

କା' ବାଡ଼ ପିଜୁଳି, କମଳା, କାକୁଡ଼ି, ମକା
ଛିଣ୍ଡେଇଛ ଯେବେ ସେହି ଗଛମୂଳେ ପକା ।
ଠାକୁରଙ୍କୁ ଡାକ ହାତଯୋଡ଼ି ମନେ ମନେ
ଆଖି ଦେବ ନାହିଁ ପଢ଼ିଛୁ ବହିରେ
କେବେ ଆଉ ପର ଧନେ ।

କହୁଛନ୍ତି ଗୁରୁ ଚୋରି ସବୁଠାରୁ ପାପ
ବୁଝେଇ ଅଛନ୍ତି ଘରେ କେତେ ବୋଉ ବାପ ।
ବାର ବାର ପରା ଖାଇ କରିଛନ୍ତି ମନା
ଉଠେଇବ ନାହିଁ ପଡ଼ିଥିଲେ ବାଟେ
ବକଟେ ବି ଚିରିକନା ।

ଚୋରି କରୁଥିଲେ ଯେତେ ଲୁଚି ଛପି କରି
ଚୋର ଚୋର ବୋଲି ଦିନେ ପଡ଼ିଯିବ ଧରି
ନିଜ ବାପ ମାଆ ନ ରହିବେ ଶୋଷ ଭୋକେ
ପଶୁ ମାଛ ପରି ତୁମକୁ କେବଳ
ଦେଖିବେ ପଡ଼ିଶା ଲୋକେ ।

କୁହ ତୁମେ ସଦା ଭାରି ଭଲ ପିଲା ଆମେ
ଦିନେ କେ' ଖରାପ ଶୁଣେ ନାହିଁ ଆମ ନାମେ
ଆମେ ଯେତେ ସବୁ ସ୍ୱାଧୀନ ଭାରତ ଛୁଆ
ଚୋର ଛାଡ଼ିଦେଇ ଋଷି ବାଲ୍ମୀକି
ପାଲଟିବୁ କେତେ ନୂଆ ।



# ନ ମାନ କିଆଁ କଥା



କଥା ନ ମାନିବା ଭୁଟର ଅସଲ ରୋଗ
ଦେଖିଲେ ବୁଢ଼ୀମା ମନାସେ ସେଲଗି ଭୋଗ
ଜ୍ୟୋତିଷଙ୍କୁ ବୋଲି ଜାତକ ଦେଖାନ୍ତି ନେଇ
କଞ୍ଜନ ପଇସା ଦେଇ ।

ଏତେ ଗାଳି ଖାଇ କଥା ମାନ ନାହିଁ କିଆଁ
ଭାବନା ମିଥ୍ୟା, ବାଟା ଯେ ଧୁଅନ୍ତି କିଆଁ
ଏତେ ମାଡ଼ ଗାଳି କିମିତି ହଜମ କର
ଆଟିରୁ ବୁଢ଼ାଇ ଘର ।

କରିବାକୁ ଯାହା ମନା ହୋଇଥାଏ ବେଶି
ସେହି କାମ ଲାଗି ହୋଇ ଯାଉଥାଅ ପେଶି
କାନ୍ଥେ କଳା ଲେସ ଗଛରୁ ଛିଣ୍ଡାଅ ଫୁଲ
କ୍ଷଣକରେ ସବୁ ଭୁଲ ।

ବସିବାକୁ ପୁଣି କହିଲେ ଉଠିବ ଝାଡ
ଝଡ ପସ୍ୱରଲେ ମିଛଟି କହିବ ଫାଡ
ବଅସ କହିଲେ ଉଠିଯିବ ସେହି କ୍ଷଣି
ସବୁକୁ ଓଲଟା ମଣି ।

ସବୁବେଳେ ଖାଲି ଓଲଟା ସ୍ୱଭାବ ତୁମ
ଶୁଅନା କହିଲେ ଆଖିକୁ ଆସିବ ଘୁମ
ଚେଇଁଥା କହିଲେ ସେଇନା ପଡ଼ିବ ଶୋଇ
ଏ କି ତୁମ ବଦଖୋଇ ।

ଭଣ୍ଡିଲ ପିଲାଏ ମୁହେଁ କି ଏକଥା ଝଡ
ବନ୍ଧୁ ଘର କେବେ ନ ହୁଅନ୍ତୁ ବରକତ
ଭଉବାପ୍ପେ କେବେ ଯାଇଥିଲେ ତୁମେ ବୁଲି
ସେ ଘରେ ପଡ଼ିଲ ହୁରି ।

ଛେଚଦଅ କାହା କାଚ ଗିଲାସଟି ଯାଇ
ଆଲୁର ବୋତଲ ସଫା କରିଦିଅ ଖାଇ
ସେ ଘର ଘରଣୀ ତୁମକୁ ବଦାମ୍ଭ ଦେଇ
ବସେ ମୁଣ୍ଡେ ହାତ ଦେଇ ।

ଅପେ ଛାପିକୁଲ୍ କେତେ ଯେ ଚାଗଡା ଚଟି
ମଣ୍ଡୋଟାଏ ଧୂଳି ହୋଇଥାନ୍ତି ଖଟି ଖଟି
କା' ଜାମା ଚିରିଥା -- ଫଟେଇଥା କା'ର ମୁଣ୍ଡ
ଘରେ ଶୁଣେ ଗାଳି ଭୁଣ୍ଡ ।

ଅଶୋଭ୍ୟ କଥାଁରେ ମଜ୍ଜିଲେ ତୁମେ ପ୍ରାଣେ
ବାପ ପର ମାଆ ହୋଇଟିବେ ଦନେ ଠାଣି
ଭଲ ମନେ ତୁମ ନ ହୋଇବେ କେହି ସାହା
କହିବାକୁ ଟିକେ ଆହା ।

ନିଜ ଦୋଷ ନିଜେ ନ ପାରିଲେ ତୁମେ ବୁଝି
ମନେ ମନେ ଡାକ ଠାକୁରଙ୍କୁ ଆଖି ବୁଜି
ଦେବେ ସେ ତୁମକୁ ଭଲ ବୁଦ୍ଧି ଭଲ ମନ
ହେବ ତୁମେ ଗୁଣି ଧନ ।

ତେଣୁ ହେ ପିଲାଏ ମୋ ଟିକି କଥାଟି ମାନ
ବଡ଼ଙ୍କ କଥାକୁ କଲେ ତୁମେ ଗୁରୁଜ୍ଞାନ
ବାପା ତ କହିବେ ସାବାସ୍‌ରେ ଆମ ପୁଅ
ଶୁଖିବ ମାଆଙ୍କ ଲୁହ ।



# କାହିଁକି ପଢ଼ ପାଠ



କାହିଁକି ପିଲାଏ ପଢ଼ ପାଠ
ଅବଧାନ ହାତୁଁ ଖାଅ ଘଣ୍ଟ
ତୁମ ପଢ଼ା ଖାଲି ଜ୍ଞାନ ରାଇଜକୁ
ଖାଲି ଟିପ ଅଙ୍କାବଙ୍କା ବାଟ ।

ସୃଷ୍ଟିଶାଳୀ ଘରେ ଜନ୍ମ ଧରି
ପେଡ଼-ପଶା ବଣ ସାପ ଚରି
ବୁଝିପିଠି ହେବେ ଶୁଣ ପଢ଼ୁଟୋକା
"ଜମନଲେଚନ ଶିକ୍ଷାଦର ।"

କିମ୍ବା ତୁମେ ପଢ଼ ଜାଣ କି ହେ
ବୁଦ୍ଧି-ସନ୍ତୁ ସୂତା ଖିଏ ଖିଏ
ଜ୍ଞାନ-ଜାଲ ବୁଣି ହେଲେ ତୁମେ ଗୁଣୀ
ବାପାଙ୍କର ଖୁସି ହେବେ କିଏ ।

ପହିଲ ପାଠର ପଙ୍କ୍ତା ଝଟି
ଅ ଆ ଠାରୁ ହ କ୍ଷ
ସେତକ ପଢ଼ିଲେ ‘ମା’ ‘ଭୂମା’ ‘ଘର’
ଜାଣିଛି ଜଠେର ଝଅ ଝଅ ।

ଗଣିତର ମୂଳ ପଣିକିଆ
ସେ ଶିଖୁ ନ ହେଲେ ଘରେ ଠିଆ
ସୂତ୍ରକା ଓବନେ ଭୂସ୍ପର୍ଶ ସଢ଼ିବ
ହେଉ ହେଉ ନୂଆ ବୁଜୁଆ ।

ସାହିତ୍ୟ ଭୂଗୋଳ ଇତିହାସ
ମେଲିବାକୁ ହବ ତାର ମାସ
ସେ ଝରକା ସବୁ ଫିଟିଲେ ମିଳିବ
ତାହାର ପବନ ଶ୍ୱାସଧାସ ।

ସେ ଘର ଖୁଣ୍ଟି ତୁମ ମନ
ଖୋଲିଲେ ପାଇବ ବହୁଧନ
ଦୂରରୁ ଆସିବ ତୁମର ପାଖିଁକି
କେତେ ପ୍ରଶଂସା ସମ୍ମାନ ।

ନ ଜାଣ ଭାଙ୍ଗିଲ ପାଠ ପଢ଼
ପାଠ ପଢ଼ି ଭଲ ହେବ ବଡ଼
ଅନ୍ଧ ପରି ହେଲେ ଅନ୍ଧାର ଭିତରେ
ଅଣ୍ଡାଙ୍କ ହୋଇବ ଡଣ୍ଡବଣ୍ଡ ।

ଗୁରୁଙ୍କୁ ଦେଖିଲେ ବାଟେ ଭାଙ୍ଗି
ଘରେ କ୍ଷେର ପଶ ଲୁଚ ନାହିଁ
ଆଜ ଜର କାଲ ଝାଡ଼ା ବାହାନାରେ
ନ ଭୁଲ ପଢ଼ାକୁ ସିଧେ ଧାଇଁ ।

ଆଜ ରବିବାର ଭଲ ଛୁଟି
ନ ପଢ଼ିଲେ ଭା'ର ମୁଏ ଛୁଟି
ପାଠକୁ ଠକିଲେ ନିଜ ଜୀବନଟା
ଯାଏ ସିନା ବୃଥା ଡଷ୍କୁଟି ।

ପଢ଼ିଲେ ଖୁସିଲେ ଦୁଧ ଭାତ
ନ ପଢ଼ିଲେ ବେକେ ଠେଙ୍ଗାମାର
ମୂର୍ଖେ ଅନାଦର—ପଣ୍ଡିତର ପାଦେ
ଯୋଡ଼େ ଏ ଜଗତ ଦୁଇହାତ ।

□ □ □

# ଧୂଳିରେ କିଆଁ ଖେଳ



ଧୂଳିରେ କିଆଁ ଖେଳ ହେ ପିଲେ
ଧୂଳିରେ କିଆଁ ଖେଳ
ଧୂଳି ଖେଳରେ କଟଇ ତୁମ
ସକାଳ ସଞ୍ଜବେଳ ।

ଧୂଳିରେ ଗଢ଼ ଦେଉଳ ଘର
ଧୂଳିରେ ରାନ୍ଧ ଭାତ
ଧୂଳିରେ କର ପୋଖରୀ କୂଅ
ଧୂଳିରେ ଖୋଳି ଗାତ ।

ଧୂଳିରେ ବୁଲି    ଧୂଳିରେ ବୁଲି
ଧୂଳିଆ ତୁମ ଦେହ
ଧୂଳିର ଏଇ    ଅଧର ମିଳେ
ସବୁଠି ତୁମ ପ୍ରିୟ ।

ଦଅନ୍ତି ବାପା    ଦାମିକା ଜାମା
ବଜାରୁ ବାଛି ବାଛି
କହନ୍ତି ବୋଉ    ଧୂଳିଆ ମୁହଁ
ନଇଛି କାଶ କାଶ ।

ଧମକ ଭରେ    ଯେଦିନ ତୁମେ
ଧୂଳିକି କର ଘର
ସମନ ଦେଇ    ଗୃହରେ ତୁମେ
ସେ ହିଁ ଧୂଳି ଘର ।

ଭ୍ରମଣ ପଛେ    ଯେତେବେଳ ମିଳ
ସବୁଙ୍କ ମନ ଏକା
ମନ ମଣ୍ଡଳେ    ମାରୁଥା କୁଦା
ଧୂଳିରେ କାଟି ରେଖା ।

ଧୂଳିରେ ଫୁଟି    ରଙ୍ଗ ବେରଙ୍ଗ
ଧୂଳିର ସବୁ ଫୁଲ
ଧୂଳିରେ ସଦା    ଖେଳି ବୁଲୁଥା
ମରଜାଘଣ୍ଟି ଭୁଲ ।

ମାଆର କୋଳୁଁ
ଧୂଳିମା' କୋଳ
ଆଦର ବେଶି ଲାଗେ
ସେ ଲାଗି ଅବା
ଢେଉଥା ଲେଖି
ସେ ଧୂଳି ମାନଙ୍କ ସାଙ୍ଗେ ।

ସେ କୁହେ ତୁମ
ବଡ଼ପା' କଥା
ସେ ବୁଝେ ତୁମ ମନ
ତୁମେ ଝିଁ ତାର
ସଙ୍ଗାଳି ସବୁ
ତୁମେ ତା' ପ୍ରିୟ ଧନ ।

ଘଦାକୁ ଗଦା
କଣ୍ଢେଇ ଦେଲେ
ଧୂଳି ଝିଁ ମନେ ପଡ଼େ
ବୋଉ କହନ୍ତୁ
ଅସନା ଟୋକା
ଧୂଳିରେ ସଦା ଗଡ଼େ ।

ବାପା କହନ୍ତୁ
ନକଲ ଘଣ୍ଟୁ
ସ୍ବର୍ଗ ଦେଉଳ ବଡ଼
ଭିତରେ ତୁମ
ମାଉଳି ଡାକ
ଧୂଳି-ଧୂସର ଅଙ୍ଗ ।

# ବଡ଼ ଠାକୁର କିଏ



ଗଛ ଭିତରେ ଓସ୍ତଗଛ
ମାଛ ଭିତରେ ଶେଉ
ପିଲା ଭିତରେ ସୁଧୀର ଯିଏ
ସଭିଙ୍କି ପାଖରେ ମୋହ ।

ଫୁଲ ଭିତରେ ପଦ୍ମଫୁଲ
ଫଳରେ ସାର ଆମ୍ବ
ମିଠା ଭିତରେ ଆଖୁର ରସ
ପିତାରେ ଭୁଇଁ ନିମ୍ବ ।

ମାସ ଭିତରେ ଶ୍ରେଷ୍ଠ ମାଘ
ବସନ୍ତ ଋତୁଗଣେ
ଜଳର ମଧ୍ୟେ ଗଙ୍ଗାଜଳ
ନୈମିଷ ସେ ବଣେ ।

ବୃକ୍ଷ ଭିତରେ ଅଶିଣ ଜନ୍ମ  ଆଳୁଅ ମଧ୍ୟେ ଖରା
ପତର ମଧ୍ୟେ କଳା ତୁଳସୀ  ନକ୍ଷତ୍ରେ ଧ୍ରୁବତାରା ।

ପଶୁ ଭିତରେ ଗୋମାତା ସାର  ପକ୍ଷୀରେ ଶଙ୍ଖଚିଲ
କାଠ ଭିତରେ ଚନ୍ଦନ କାଠ  କ୍ଷେତ୍ରରେ ଧାନବିଲ ।

ତେଜ ଭିତରେ ସୂର୍ଯ୍ୟ ତେଜ  ତୃଣ ଭିତରେ ଦୁବ
ଯାତ୍ରା ମଧ୍ୟେ ତୀର୍ଥ ଯାତ୍ରା  ସବୁଠୁଁ ଜାଣ ଶୁଭ ।

ନଈ ଭିତରେ ଗଙ୍ଗାନଈ  ଦେଉଳେ କୋଣାରକ
କୁଟୁମ୍ବ ମଧ୍ୟେ ସବୁଠୁଁ ବଡ଼  ବାପ ମା ମନେରଖ ।

ସେଥିରେ ତୁମ ବଡ଼ ଠାକୁର  ତାଙ୍କର ପାଦ ସେବ
ତାଙ୍କର ବରେ ବଡ଼ ଧନକୁ  ବଡ଼ ମଣିଷ ହେବ ।

ଗୋଟିଏ କଥା ରଖିବ ମନେ  ବାପଠୁଁ ବଡ଼ ମାଆ
ସୁଖ ଦୁଃଖରେ ରୋଗ ଶୋକରେ  ତୁମର ସେଇ ସାହା ।

ପୃଥିବୀ ଠାରୁ ମାତା ହିଁ ବଡ଼  ଆକାଶ ଠାରୁ ବାପ
ଫଳନ୍ତି ପର କଲ୍ୟାଣ ତାଙ୍କ  ବଚନ ଅଭିଶାପ ।

ଠାକୁର ମଧ୍ୟେ ବଡ଼ ଠାକୁର  ସେ ବାପ ମାଆ ଦୁହେଁ
ବାତ୍ସଲ୍ୟର ଦୁଇଟି ଧାର  ବନ୍ଦେ ସେ ଦୁଇ ମୁହେଁ ।

ମାନିଲେ ଚଳି ତାଙ୍କର କଥା  ହୋଇବ ତୁମେ ବଡ଼
ଜାଣିବ ତୁମେ ସାରା ଦୁନିଆ  ଜାଣିବ ତୁମେ ଗଡ଼ ।



# କାହିଁକି କରୁ କଳି



ପାଞ୍ଚଟି ବୋଲି ଭଉଣୀ ଭାଇ

ଏକୁ ଆରକେ ବଳି

ଖାଇଲା ବେଳେ ଶୋଇଲା ବେଳେ

କାହିଁକି କର କଳି ।

କଳିଟି କଲେ ରାଗରେ ଜଳି

ରକତ ଉଠେ ଚାଖି

କି ସୁଖ ମିଳେ ଘାମର ଭଳି

କଳହ-ଯୁଦ୍ଧେ ମାତି ।

ଚଉଡ଼ା ମାଆ ପିଠନ୍ତ ବାପା
ଗଗନ୍ତ ଭାଇ ଅପା
ଯୋଡ଼େଇ ହୁଏ ସବୁର ପାଟି
ସେ କଳ କର ଲଫା ।

ଏକ ସୂତାରେ ଗୁନ୍ଥା ଯେ ତୁମେ
ଜାତି ଜାତିକା ଫୁଲ
ଏକ ମା' ପେଟ ଭଉଣୀ ଭାଇ
ଏ କଥା ନାହିଁ ଭୁଲ ।

ଠିକ ପ୍ରାଣର ହସ ଖୁସିରେ
ସରଗ ହୁଏ ଘର
ଖେଳ-ମେଳରେ ଶରଧା ସ୍ନେହେ
ଥିଲେଟି ପରସ୍ପର ।

ସବୁର ପରେ ଅଛ ଯେ ବଡ଼
ସାନଙ୍କୁ କର କ୍ଷମା
ଆଜ ସେ ସାନ ତୁମର ସଙ୍ଗେ
ଲାଗିବେ ନାହିଁ ଜମା ।

ଆଙ୍ଗି ଦେଲେ ତାଙ୍କର ପିଠି
ଧରବେ ତୁମ କାନ
ଚଳବେ ଅନ୍ତ ନସ୍ତାନ ଭଳି
ତୁମର ବୋଲ ମାନ ।

ଉଠେଇ ନକ ତାଙ୍କୁ କେହି
ପଡ଼ିଲେ ଟିକେ ଝୁଣ୍ଟି
ବୋଉ ଯା' ଦେବେ ସମାନ କରି
ଖାଇବ ବାଣ୍ଟି କୁଣ୍ଟି ।

ମାଇଲେ ଖାନ ତାଙ୍କର କାନ
ମୋଡ଼ିବ ନାହିଁ ପିଲେ
ସେ ଦୁଷ୍ଟ କାଳ ହୋଇବେ ସାହା
ପଛକୁ ତୁମ ଥିଲେ ।

କଳଟି ଗୁଡ଼ ମେଳଟି ବାନ୍ଧ
ଖେଳରେ ସଦା ମାତ
ନାନା ବାଇଆ ସଙ୍ଗୀତ ଗାଇ
ହାତରେ ଛନ୍ଦ ହାତ ।



# କାହିଁକି ତୁମେ ରୋଗା



ହାତ ଗୋଡ଼ ସରୁ ପେଟଟି କଖାରୁ
ଗଣିହୁଏ ଗୁଣ୍ଡ ହାଡ଼
ଶେତା ଦେହ ଚମ କାହିଁକି ତୁମର
ଆଖିରେ ଆଖିଏ ଗାଡ଼ ।

ଆଜ ହୋମ୍ୟୋପାଥି କାଲି କବିରାଜ
ପରଦିନ ଡାକତରଙ୍କ
ଯେତେ ଅଉଷଧି କେଉଁ ତ ଅସଲ
ରୋଗଟି ନ ପାରେ ଧରି ।

ଅଢନ ତୋଫାନ		ଫର କେଉଁଢନ
ଦେହେ ମାଡ଼ିବସେ ଜର
ନାକ ଗଳେ ଧାର		ଛଣ୍ଟି ମୂକେ କଫ
କାନରେ ପୂଜର ଘର ।

ମାସେ ଗ୍ବରଢନ		ଗ୍ବହାଳୀ ଯିବାରେ
ଗୁରୁଜୀ ହୁଅନ୍ତି ଖପା
ତାଙ୍କର ହୁକୁମେ		ସେହି କେତେଦିନ
ଢନ୍ଦ ମୁଣ୍ଡ ହୁଏ ସଫା ।

ଢନ୍ଦକୁ ପିଲାଏ		ନଜର ନ କଲେ
ତୁମକୁ କଢେ ସେ ଫର
ନେଲେ ତା ଯତନ		କାର ରୋଗେ ତୁମେ
ନ ହୋଇବ ଜରବର ।

ବେଳ କାଳ ଜଗି		ଖାଇଲେ ପିଇଲେ
ଖେଳିଲେ ପଢ଼ିଲେ ପାଠ
ରୋଗ ଆଉ ତୁମ		ଦେହେ ପଶିବାକୁ
ନ ପାଇବ ଟିକେ ବାଟ ।

ବଇଦଙ୍କ ପାଦ ନ ପଡ଼ିବ ପୁଣି
ଭୁଲରେ ବି ତୁମ ଘରେ
ଗଧ ରୋଗା କଣ୍ଟ ମାଷ୍ଟରେ କେବେ ହେଁ
ନ ଚଢ଼ିବେ ତୁମ ପରେ ।

ଦେହକୁ ମନକୁ ସଫା ରଖିଥିଲେ
ହୋଇ ସଦା ମନ ଖୁସି
ବଳେ ବଳେ ରୋଗ ବାଟ ଭୁଲି ଭୁଲି
ପଳେଇବେ ସବୁ ରୁଷି ।

ସାଙ୍ଗ ସାଥୀ ଆଉ ତୁମକୁ କେବେହେଁ
ନ କହିବେ ଛିଇ ଛିଇ
ଭଲ ହୋଇ କପାଁ ନ ବଢ଼ିବ ତୁମେ
ଯେତେଦିନ ଅଛ ଜୀଇ ।

ଆଜି ପିଲା ଅଛ ଶ୍ରେଷ୍ଠ ହୁଅ ତୁମେ
କାଲି ସାଜ ଦେଶ ନେତା
ଠାଣି ଦନ୍ତ ଠାଣି ମୁହଁରେ ଝାଡ଼ିବ
କେତେ ବଡ଼ ବଡ଼ କଥା ।



# ସବୁଠୁଁ କିଏ ମିଠା



ତୁମେ ଯା'କୁ ଭାବ ସବୁଠଉଁ ମିଠା
ନ ମିଳେ ତା ଆଖୁ ଦୋରୁଏ
ସେ ମିଠା ନ ଥାଏ ଜିଲପି ଲଡ଼ୁରେ
ଗବଡ଼ ବା ଦୁଧ କୋରୁଏ ।

ସେ ମିଠା ସୁଆଦ କେଡ଼େ ସୁଖକର
ଚଖା ନ ଯାଏ ତା ଜିଭରେ
ଯା' ଭାଗେ ନ ପଡ଼େ ସେ ସୁଖ ତହିଁରୁ
ଜଣେ ଅଧେ କେହି ଥିବେ ରେ ।

ପିଉଛ ପଇଡ଼ ମିଶିର କନ୍ଦର
ବାଟି ବାଟି ସରବତ ହେ
ମାଆ ସ୍ନେହ ପର କେଳ୍ପ ଲାଗଇ କ
କହଲ ପିଲାଏ ସତ ହେ ।

କେତେ ମିଠା ସତେ ମାଆର ଶରଧା
କହି ତା ନ ହୁଏ କଥାରେ
କି ଦୁଃଖ ଭୂମର ମନକୁ ନ ବାଧେ
ପଡ଼ିଲେ ସେ ରୋଗ ଦଶାରେ ।

ମାଆର ଆଉଁସା ମିଠା କଥା ଭାଷା
କିଣି ହୁଏ ନାହିଁ ଟଙ୍କାରେ
ଆଜ ଯେତେ ସ୍ନେହ ନାଆଁକୁ ମାତର
ଥାଏ ତା ଉପର ଢଙ୍କାରେ ।

ଆମ୍ବ ପଣ ତାର ଉପର ସୁନ୍ଦର
ଭିତର ବି ରସରସିଆ
ସବୁର ଜୀବନେ ସେ ସେନେହ କା'ର
ନ ହୁଅଇ ପ୍ରାଣ ଘଷିଆ ।

ତା ପରି ନାହିଁ ଜେ        ଏ ତିନ ଭୁବନେ
ବୁଝିବାକୁ ମନ କଥାଟି
ପାଦ ତଳେ ତାର        ନଇଁଯାଏ ତେଣୁ
ସାରା ଜଗତର ମଥା ହିଁ ।

ଯେବେ ମନ ଦୁଃଖ        ମନେ ଥାଏ ତୁମ
ତାକୁ ହିଁ ଦେଖିଲେ ଯାସୋର
ଝଲେଇଛି ପରି        ପାଖେ ପାଟେ ତା'ର
ହେଜଥା ନସର ପସର ।

ଏତେ ମିଠା ପିଏ        ଚଖାଏ ତୁମକୁ
ମିଠା ଖାବ ରଖ ତାହାଠିଁ
ମରତେ ପିଇଛୁ        ମା'ଆର ସେନେହେ
ଶୁଣିଲ୍ଲ ଅମୃତ ନାଆଁ ହିଁ ।

ସବୁଠାରୁ ମିଠା        କଏ ସେ ଏଥର
ବୁଝିପାରିଲ ତ ପିଲାଏ
ମାଆ ମନେ ସୁଝ        ଦେବାରେ ଯେମିତି
ନ କରିବ ଭଳେ ତିଳେ ହେ ।



# କି କଥା କହେ ଫୁଲ



ଜାଣ କି ପିଲେ ତୁମେ ସତେ
କି କଥା କହେ ଗଛରେ ଫୁଲ
କେତେ କଅଁଳ କେତେ ସୁନ୍ଦର
କହିଲ କିଏ ଅଛି ତା' ତୁଲ ।

ବଡ଼ ଦେଖିଲୁ ଜଗତେ ଯିଏ
ସଞ୍ଜିଆ ହେଲେ ମୁଦେ ଆଖି
ଭଅଁର ସାଙ୍ଗେ ଖେଳେ ବୋଲି
ଅନେକେ ଥାଏ ତା' ବାଟ ଚାହିଁ ।

ଦେଖିଛ କେବେ ମୁହଁରେ ତାର
ଯନ୍ତ୍ରଣା କିବା ବିରସ ଭାବ
ସବୁଠିଁ ବଖାଣେ ସବୁଠିଁ ଦୋଳେ
ସେଇଁଠି ତାକୁ ଦିଅ ବା ଠାବ ।

ତୁମକୁ ଦେଖି କହଇ ଝିଏ
ଛୁଅଁ ନା ମତେ ଅନାଥ ଖାଲି
ଛୁରେଣ୍ଡ୍ରଲ ଜେଙ୍ଗ ନ ଦିଅ ମାତ
ଫୁଟିବ ମଞ୍ଜି ପାଖୁଡ଼ା କାଲି ।

ମକଚ ମତେ ଫୋପାଡ଼ ଦେଲେ
କାନ୍ଦିବ ଝୁରି ମୋ ଗଛ ମାଆ
ପାଖୁଡ଼ା ତଳେ ରଖିଛି ମହୁ
ଚଟୁମି ଯେତେ ଖାଇବ ଖାଆ ।

ଦେଖୁଛ ମତେ ଫେନ୍ନାକୁ ଫେନ୍ନା
ଫୁଟିଛି କେଡ଼େ ମୁଁ ସାନ ସାନ
ରଗେ ମୁଁ ନାହିଁ ରୁଷେ ମୁଁ ନାହିଁ
କଳରେ କା'ର ନ ଦିଏ କାନ ।

ଭ୍ରମର ପର ଧୂଳିରେ ଗଢ଼
ନ କରେ ମଳି ମୋର ଏ ଦେହ
ପଦେ କେ ମତେ ନ ଦିଏ ଗାଳି
ସବୁରି ଠାରୁ ପାଏ ମୁଁ ସ୍ନେହ ।

ସଙ୍କୋଚ ମୋର ପରଜାପତି
ଜୀବନ୍କୁ କଲା ଶରଧା କରେ
ଏକାଠି ଖେଳୁ ଏକାଠି ନାଚୁ
ଦୋହଲା ବଣ ବଗିଚ୍ଚ ଘରେ ।

ବାସନା ମୋର କେଡ଼େ ମଧୁର
ମହୁଟି ମୋର ଜୀବନ ଧନ
ଛୁଣ୍ଡାଇ ମତେ ଦବାକୁ ଦଳ
କମିତ ବନେ ଭ୍ରମର ମନ ।

ଭ୍ରମର କାନ ଦେଲେ କେ ମୋତେ
ଭ୍ରମକୁ ପିଲା କମିତ ବାଧେ
ମୋ ଦେହେ ତୁମେ ଛୁଇଁଲେ ଟିପ
ବନେ ମୋର ହୃଦୟ କାନ୍ଦେ ।

ଫୁଟେ ମୁଁ ଲଣ୍ଠା ଅରମା ପଙ୍କେ
ଫୁଟେ ମୁଁ ବାଡ଼ ବଗିଚ୍ଚ ବଣେ
ସବୁଠି ସ୍ୱରେ ମୋ ହସ-ମହୁ
ମୋ ପର କାହିଁ ଦେଖିଛ କଣେ ।

□ □ □

# କଅଣ କହେ ଜହ୍ନ



ଆକାଶେ ହସଇ ଜହ୍ନ
ଦେଖି ମନ ସଭିଏଁ କି କହେ ତୁମକୁ ଭାବନ୍ତି କି ଦେଇ ମନ ।

ସରଗର ମଥାମଣି
ପିଲାଠାରୁ ବୁଢ଼ା ଖୁସି ହୁଅନ୍ତି ସେ ମୁହଁଟି ଦେଖିଲା କ୍ଷଣି ।

କିରଣଟି କେଡ଼େ ଥଣ୍ଡା
ଅଜାଡ଼ି ଦିଏ ସେ ସବୁରି ମନରେ ଅମୃତ କି ହଣ୍ଡା ହଣ୍ଡା ।

ସେ କହେ ମୋ ନାଆଁ ଜହ୍ନ
ଏକୋଇର ବଳା ଶଶିକେସନ ମୁଁ ମୋ ମାଆର ଗଣ୍ଠି ଧନ ।

ମୋ ନାଆଁ ସରଗ ଶଶୀ
ମତେ ଲୁଣ୍ଠିଦେଲେ କାନ୍ଦଣା ପାସୋର ଜଠ ତୁମେ ସବୁ ହସି ।

ମୁହେଁ ସିନା ମୋର ଚାନ୍ଦ
ସବୁଠ ଜଗତରେ ବାଣ୍ଟେ ବାଟି ବାଟି ରୂପା କିରଣ ମୁଁ ଛାନ୍ଦ ।

ନ ପରନ୍ତୁ କେତେ ତାରା
ମତେ ଦେଖିବାକୁ ପାଗଳ କ ହିଁକି ନାଚନ୍ତି ଏ ଦୁନିଆ ସାରା ।

ପକ୍ଷେ ଯାଏ ପକ୍ଷେ ମରେ
ତଥାପି ମୋହର ଉଜଳ ମୁହଁଟି ସଭିଙ୍କି ଆଥସୁ ଜରେ ।

ଲୁଚ ଝଲଝଲ ରାତି
କେତେ ରାତ ରୁଷା ଭୂଲିଯାଅ ତମେ ପାଇ ମୋ ପକେଜା ସାଥୀ ।

ଡାକ ତୁମେ ମାମୁ ମତେ
ମତେ ଦେଖି ଦେଖି ନକଲୁ ମିଲାଏ ନାଚିବ କ ମେଷ୍ଟ ପଥେ ।

ମୁଁ ରାତି ମଥାର ଟିପ
ତୁମେ ସେହ୍ନଭଳ ଗୋଟିଏ ଗୋଟିଏ କୁଳର ଉଜଳ ଦୀପ ।

ଲୁଚେ ପଚ୍ଛେ ଖ୍ୟାଣ ଥାଉ
ମିଳାଏ ତୁମର ଗୁଣର ସୁନାମ ଦେଶେ ଦେଶେ ବ୍ୟାପିଯାଉ ।

ପୂଜା ହୁଏ ଗୁଣ ପାଇଁ
କୋଟି ତାରା ପରି ବସ୍ତ୍ର ରହିଥିଲେ କେହି ପଚାରିବେ ନାହିଁ ।

ମୋହ ପରି ଥିଲେ ଏକ
ରଖିପିବ ତୁମେ କାଳ କାଳ ପାଇଁ ସାରା ଜଗତର ଟେକ ।



# କାହିଁକି ପଡ଼େ ଖରା



ଜାଣିଚ କି ଖରା ପଡ଼େ କାହିଁକି
ଶୁଣିଥିଲ ଥରେ ମନେ ନାହିଁକି ?

ସୁରୁଜ ଦେବତା କରୁଣ ସିଏ
ସବୁରି ଉଦରେ ଜୀବନ ଦିଏ ।

ଖରା ହେଲେ ତୁମେ ପୋଷାକ କାଢ଼
ଝାଣ କରେ ପୂଜା ଉଦର ଦାଢ଼ ।

ଘାଣ୍ଟି ହେଉଥିଲେ ଔଷଧ ବଣ
ଦେବନ ଭଲ କରେ ସେନ୍ଦ୍ର କିରଣ ।

ଜହ୍ନଁ ନ ଘରରେ ଖେଳକଲେ ବସି
ମୂହଁଟି ଦିଶଇ ସରଗ ଶର୍ଣ୍ଣା ।

ଘରେ ଭୂମ କଟ୍ଟି ପାଉ ନ ଥାଉ
ଝରକାରେ ଖର ଆଲୁଅ ମାଉ

ମଟି ଅଗଣାରେ ଲମ୍ବାଇ ସପ
ଖର ପୁର୍ଣ୍ଣି ପୁର୍ଣ୍ଣି ମାରୁଥା ଗପ ।

ନ ପ ଉଥା ସେବେ ଲହୁଣୀ ଘିଅ
ଅଦେଖାରେ ତାହା ଖରଠୁଁ ନିଅ ।

ଶାଗଶ୍ରେତ ବଇଞ୍ଚ ମୂଳଆ ଶ୍ବଷୀ
ଖର ଯୋଗେ ସୁଖୀ ସେ ବାରମାସୀ ।

ଖର ହୋଇ ହୋଇ ତା ଦେହସୁଦ୍ଧା
ହାତ ଗୋଡ଼ ଚାର ପାଲଟେ ଲୁହା ।

ଖର ଖର ହେଲେ ବୁହାଏ ଝାଳ
ଶୁଖିଯାଏ ନଈ ପୋଖରୀ ନାଳ ।

ସେନ୍ଦ୍ର ପାଣି ଶୋଷି ବରଷା କରେ
ବିଲ ବଣେ ଫୁଲ ଫସଲ ଧରେ ।

ମାଟିରେ ପଡ଼ିଲେ ମେଘ ଅସରା
ସୃଷ୍ଟିଆଡ଼େ ମେଲେ ଶୋଭା ପସରା ।

ଖରାଟି ନ ଥିଲେ ବୃକ୍ଷ ଛା ଫାଟି
ମରୁ ପରି ଶୋଇଥାଆନ୍ତା ମାଟି ।

ପହିଲା ଖରାଟି କି ଚକମକ
ବସୁଧା କହେ ମୋ ଜୀବନ ରଖ ।

ମାଘମାସ ଶୀତ ବାଘର ବଳ
ଖରା ତଳେ ସବୁ ଗଣ୍ଡ କମ୍ବଳ ।

ଶୀତେ ଯେବେ ଦେହ କାତର ଯାଏ
ଖରା ଲାଗେ ଏକା ଅମୃତ ପ୍ରାୟେ ।

ଖରା କହେ ଆରେ ପିଲାଏ ଶୁଣ
ସମସ୍ତଙ୍କୁ ମୁହିଁ ମଣେ ସମାନ ।

ଧନୀ କୋଠା ଛାତେ ଗରିବ ଛଳେ
ସମାନ ଭାବେ ମୁଁ କିରଣ ଢାଳେ ।

ଭୋରଅରୁ ଆସେ ମୁଁ ସଞ୍ଜରେ ଯାଏ
ନିୟମ ଲଙ୍ଘନ ମୋର ନଥାଏ ।

ନିୟମେ ଚଳିଲେ ବୋଲାଇ ବଡ଼
ଢନେ ନଷ୍ଟେ ଭ୍ରମେ ଜାଣିବ ଗଢ଼ ।

# ଅସଲ ଦେବତା କିଏ



କେଉଁଠି ଥାଆନ୍ତି ସଅଁ
　　　　ଜାଣିଛ କି ପିଲାଏ
ଜାଣିଛ ଜାଣିଛ କହ
　　　　ମାର ନାହିଁ ଛଳ ହେ ।
ଦେବତା ଦେଖିଚ ତୁମେ
　　　　ଦେଉଳର ଭିତରେ
ଗଦ ଗଦ ସ୍ୱରେ ଯହିଁ
　　　　ଡରେ ରାମ ଗୀତରେ ।

ନିତ୍ୟ ପ୍ରତି ବାଜେ ଶଙ୍ଖ
ହୁଏ ସଞ୍ଜ ଆଳତି
ଚନ୍ଦନ ତୁଳସୀ ସାଙ୍ଗେ
ବାସେ ଚମ୍ପା ମାଳତୀ ।

ଦେବତା ନାହାନ୍ତି ସେଠି
ପୂଜା ପାଏ ମୂରତି
ଜୁହାର ଦେବାକୁ ମନେ
କରିଦିଏ ଆରତି ।

ଭୋଗ ଲାଗେ ସେଠି ଯେତେ
ପଞ୍ଚାମୃତ କାକର
ସବୁର ଆଖିକି ଯିଏ
ଦିଏ ଖାଲି ଠକର ।

ଦେବତା କହନ୍ତି ଖାଲି
ଭୋଗେ ବନ୍ଧା ନୁହେଁ ମୁଁ
ଦୁଃଖେ ଯେଉଁ ଡାକେ ମତେ
ତା' ପ୍ରାଣକୁ ଛୁଏଁ ମୁଁ ।

ଦେବତା ଅଛନ୍ତି ଲୁଚି
ଜଳେ ସ୍ଥଳେ ଆକାଶେ
ସବୁ ଗଢ଼ି ଥୋଇଛନ୍ତି
ଆମ ସୁଖ ସକାଶେ ।

ଅଛନ୍ତି ସେ ଲୁଚି ପ୍ରତି
ଧୂଳିକଣା ଭିତରେ
ଗଛ ଲତା ଜୀବଜନ୍ତୁ
ସଭିଙ୍କର ଚିତ୍ତରେ ।

ଦୁଃଖୀର ସେ ସାହା ବୋଲି
ନାମ ଘେନବନ୍ଧୁ ହେ
ଦୁଃଖୀର ଯେ ଦୁଃଖ ବୁଝେ
ନ ଗ୍ରୁଡ଼ନ୍ତୁ କାନ୍ଧୁ ହେ।

ଗରିବ ଡାକ ଯେ ଶୁଣେ
ସେହି ଅଟେ ଦେବତା
ବାହାର ଭକାର ସେବା
ପାଇଁ ମନ ହେବ ତା'।

ଦୁଃଖୀ ରଙ୍କି ମନ ବୁଝି
ଦେଲେ ତୁମେ ଦାନ ହେ
ତାଙ୍କ ପାଖେ ହେବ ବଡ଼
ତୁମେ ସାନ ସାନ ହେ।

ଅନ୍ଧ ଛୋଟା କୁଜା ଦେଖି
ନ ହୋଇବ ଖତେଇ
ଦଅ କିଛି ମାଗୁଥିଲେ
କାନ୍ଦଟିକୁ ପଚେଇ।

ମଣିଷର ଦସ୍ତାକ୍ଷ ଯେ
ସେହି ବଡ଼ ଠାକୁର
ଯେତେ ଧର୍ମ, କର୍ମ, ମାର୍ମ
ସବୁ ତାର ସ୍ୱକର।



